# ଆମ ପୁରାଣ କଥା

( ଦ୍ୱିତୀୟ ଖଣ୍ଡ )

ଲେଖକଦ୍ୱୟ :

ଶ୍ରୀ କହ୍ନାଇଁ ଚରଣ ସ୍ୱାଇଁ

ଶ୍ରୀ ପରମାନନ୍ଦ ଷଡ଼ଙ୍ଗୀ

ନୂତନ ସଂସ୍କରଣ—୧୯୮୯

ପ୍ରକାଶକ :

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, କଟକ-୨

ମୂଲ୍ୟ—ଦୁଇଟଙ୍କା ମାତ୍ର

# ସୂଚୀପତ୍ର



●


ମୁଦ୍ରକ-
ମହାଲକ୍ଷ୍ମୀ ପ୍ରେସ,
ସାହେବଜାଦା ବଜାର, କଟକ-୨

# କୁଳଗୌରବ ଭଗୀରଥ

ପୁରାକାଳରେ ଅଯୋଧ୍ୟାରେ ସଗର ବୋଲି ଜଣେ ରାଜା ଥିଲେ । ସେ ଏକଶତ ଅଶ୍ୱମେଧ ଯଜ୍ଞ କରିବାକୁ ସ୍ଥିର କଲେ । ଗୋଟିଏ ପରେ ଗୋଟିଏ ଏହିପରି ତାଙ୍କର ଊନଶତ ଅଶ୍ୱମେଧ ଯଜ୍ଞ ନିର୍ବିଘ୍ନରେ ସମାପ୍ତ ହେଲା ।

ସଗର ଶେଷ ଯଜ୍ଞ ନିମନ୍ତେ ବିଶେଷ ଆୟୋଜନ କଲେ । ଏଥିରେ ଦେବରାଜ ଇନ୍ଦ୍ରଙ୍କର ଈର୍ଷା ହେଲା । ଏଥି ପୂର୍ବରୁ ଇନ୍ଦ୍ର ଏକଶତ ଅଶ୍ୱମେଧଯଜ୍ଞ କରି ଶତକ୍ରତୁ ଉପାଧି ପାଇଥିଲେ । ସେ ମନେକଲେ, ଯଦି ସଗର ଶହେ ଅଶ୍ୱମେଧ ଯଜ୍ଞ କରନ୍ତି ତେବେ ସେ ତାଙ୍କ ସମକକ୍ଷ ହେବେ । ଏଣୁ ସେ ସଗର ରାଜାଙ୍କର ଶେଷ ଯଜ୍ଞକୁ ପଣ୍ଡ କରିବା ନିମନ୍ତେ ଯଜ୍ଞଅଶ୍ୱକୁ ବାରମ୍ବାର ଧରିନେଇ ଗଲେ । କିନ୍ତୁ ପ୍ରତିଥର ସଗରଙ୍କ ପୁତ୍ରମାନେ ଅଶ୍ୱଟିକୁ ଉଦ୍ଧାର କଲେ ।

ଶେଷରେ ଇନ୍ଦ୍ର ଗୋଟିଏ କୌଶଳ କଲେ । ସେ ଅଶ୍ୱକୁ ନେଇଯାଇ ପାତାଳପୁରରେ କପିଳ ମୁନିଙ୍କ ନିକଟରେ ବାନ୍ଧିଦେଇ ଆସିଲେ । ମୁନି ସେତେବେଳେ ତପସ୍ୟାରେ ବସିଥାନ୍ତି ।

ସଗରଙ୍କ ପୁଅମାନେ ଅଶ୍ୱକୁ ଖୋଜି ଖୋଜି ଶେଷରେ ପାତାଳ ପୁରରେ ପହଞ୍ଚିଲେ ଏବଂ ସେଠାରେ ଯଜ୍ଞଅଶ୍ୱକୁ ଦେଖିପାରିଲେ । ସେମାନେ ମନେକଲେ, ମୁନି ଅଶ୍ୱଟିକୁ ଚୋରାଇ ଆଣିଛନ୍ତି । ତହୁଁ ସେମାନେ କପିଳ ମୁନିଙ୍କ କଟାଧରି ତାଙ୍କୁ ଖୁବ୍‌ମାଡ଼ ଦେଲେ । ସଙ୍ଗେ ସଙ୍ଗେ କପିଳଙ୍କର ଧ୍ୟାନ ଭାଙ୍ଗିଗଲା । ସେ କ୍ରୋଧାନ୍ୱିତ ହୋଇ ସଗର ପୁତ୍ରମାନଙ୍କୁ ଅଭିଶାପ ଦେଲେ, "ତୁମ୍ଭେମାନେ ଦଗ୍ଧ ହୁଅ ।" ତହୁଁ ତହୁଁ ପ୍ରକାଣ୍ଡ ଅଗ୍ନି ଜଳିଉଠିଲା ଓ ସଗର ରାଜାଙ୍କର ଷାଠିଏ ହଜାର ପୁଅ ନିଆଁରେ ପୋଡ଼ି ହେବାକୁ ଲାଗିଲେ ।

ବହୁ ବର୍ଷ ବିତିଗଲା । ଯଜ୍ଞଅଶ୍ୱ ଫେରିଲା ନାହିଁ କି ପୁତ୍ରମାନଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ତହୁଁ ସଗର ନିଜ ନାତି ଅଂଶୁମାନକୁ ଯଜ୍ଞ ଅଶ୍ୱ ଖୋଜିବା ପାଇଁ ପଠାଇଲେ । ସେ ମର୍ତ୍ତ୍ୟରେ ଅଶ୍ୱକୁ ନ ପାଇ ପାତାଳ ପୁରରେ ପ୍ରବେଶ କଲେ ଏବଂ କପିଳ ମୁନିଙ୍କର ଆଶ୍ରମରେ ଅଶ୍ୱଟି ବନ୍ଧା ହୋଇଥିବାର ଦେଖିଲେ । ସେଠାରେ ନିଜର ପିତୃଗଣ ଅଗ୍ନିରେ ପୋଡ଼ି ଯାଉଥିବାର ଦେଖି ଅଂଶୁମାନ ଦେହଧରି ରହି ପାରିଲେ ନାହିଁ । ସେ ମୁନିଙ୍କଠାରୁ ଅଭିଶାପ କଥା ଶୁଣିପାରିଲେ ଓ ପିତୃଗଣ କିପରି ଏଥିରୁ ଉଦ୍ଧାର ପାଇବେ ତାହାର ଉପାୟ ତାଙ୍କୁ ପଚାରିଲେ ।

କପିଳ ଅଂଶୁମାନର ବ୍ୟବହାରରେ ଖୁବ୍ ସନ୍ତୁଷ୍ଟ ହୋଇ କହିଲେ, "ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣି ପାରିଲେ ତାଙ୍କର ଜଳସ୍ପର୍ଶରେ ତୁମ୍ଭର ପିତୃଗଣ ଉଦ୍ଧାରପାଇ ସ୍ୱର୍ଗକୁ ଚାଲିଯିବେ ।"

ଅଂଶୁମାନ କପିଳଙ୍କ ଆଦେଶରେ ଅଶ୍ୱଟିକୁ ଘେନି ନିଜ ରାଜ୍ୟକୁ ଫେରି ଆସିଲେ ଓ ସଗର ରାଜା ତାହାକୁ ବଳିଦେଇ ଯଜ୍ଞକାର୍ଯ୍ୟ ଶେଷ କଲେ ।

ସଗର ଗଙ୍ଗାଙ୍କୁ ସ୍ୱର୍ଗରୁ ମର୍ତ୍ତ୍ୟକୁ ଆଣିବାକୁ କେତେ ଯତ୍ନ କଲେ । କିନ୍ତୁ ସବୁ ବିଫଳ ହେଲା । ତାଙ୍କ ପରେ ଅଂଶୁମାନ ଓ ଅଂଶୁମାନଙ୍କ ଅନ୍ତେ ତାଙ୍କ ପୁଅ ଦିଲ୍ଲୀପ ଅଯୋଧ୍ୟାର ରାଜା ହେଲେ । ସେମାନେ ମଧ୍ୟ ବହୁ ବର୍ଷ ତପସ୍ୟାକରି ଗଙ୍ଗାକୁ ମର୍ତ୍ତ୍ୟକୁ ଆଣିପାରିଲେ ନାହିଁ । ଦିଲ୍ଲୀପଙ୍କ ପୁତ୍ରର ନାମ ଭଗୀରଥ ।

ଭଗୀରଥ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିବା ନିମନ୍ତେ ଅନେକ ବର୍ଷ ବ୍ରହ୍ମାଙ୍କୁ ତପସ୍ୟା କଲେ । ବ୍ରହ୍ମା କହିଲେ, "ଭଗୀରଥ ! ଗଙ୍ଗା ପୃଥିବୀକୁ ଓହ୍ଲାଇଲେ ତାଙ୍କର ବେଗ ମହାଦେବଙ୍କ ବ୍ୟତୀତ ଅନ୍ୟ କେହି ଧାରଣ କରି ପାରିବେ ନାହିଁ । ତୁମେ ଆଗ ମହାଦେବଙ୍କୁ ତପସ୍ୟାରେ ସନ୍ତୁଷ୍ଟ କର । ସେ ଏଥିରେ ରାଜି ହେଲେ, ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିବାକୁ ଯତ୍ନ କରିବ ।"

ତହୁଁ ଭଗୀରଥ ବହୁ ବର୍ଷ ତପସ୍ୟାକରି ଶିବ ଓ ଗଙ୍ଗାଙ୍କୁ ସନ୍ତୁଷ୍ଟ କଲେ । ମହାଦେବ ଅଟଳ ଭାବରେ ଠିଆ-ହୋଇ ରହିଲେ । ଗୃହୁଁ ଗୃହୁଁ ଗଙ୍ଗା ସ୍ୱର୍ଗରୁ ଓହ୍ଲାଇ ଶିବଙ୍କ ଜଟାଦେଇ ପୃଥିବୀକୁ ଗଡ଼ିଆସିଲେ । ଭଗୀରଥ ଶଙ୍ଖ ବଜାଇ ଆଗେ ଆଗେ ବାଟ କଢ଼ାଇ ନେଲେ । ଗଙ୍ଗା ତାଙ୍କ ପଛେ ପଛେ ଗୃହୁଥାନ୍ତି । ଯାଉଁ ଯାଉଁ ବାଟରେ ଜହ୍ନୁ ମୁନିଙ୍କ

ଆଶ୍ରମ ପଡ଼ିଲା । ଗଙ୍ଗାଙ୍କ ସ୍ରୋତରେ ତାଙ୍କର ଯଜ୍ଞସ୍ଥଳୀ ବୁଡ଼ିଗଲା । ମୁନି ରାଗିଯାଇ ନିଜ ହସ୍ତରେ ଗଙ୍ଗାଙ୍କୁ ଧରି ଚଳୁ



କରିଦେଲେ । ଏଥିରେ ଭଗୀରଥଙ୍କ ବୁଦ୍ଧି ହଜିଗଲା । ସେ ଦଶବର୍ଷ କାଳ ମୁନିଙ୍କ ସେବାକଲେ । ଶେଷରେ ତାଙ୍କର ଦୟା ହେଲା । ସେ ନିଜର ଜାନୁ ଚିରି ଗଙ୍ଗାଙ୍କୁ ବାହାର କରି-ଦେଲେ । ଜହ୍ନୁ ମୁନିଙ୍କର ଗର୍ଭରେ କିଛିକାଳ ଥିବାରୁ ଗଙ୍ଗାଙ୍କର ଅନ୍ୟ ନାମ 'ଜାହ୍ନବୀ' ।

ତାପରେ ଆଉ କୌଣସି ବାଧାବିଘ୍ନ ପଡ଼ିଲା ନାହିଁ । ଗଙ୍ଗାନଦୀ ମର୍ତ୍ତ୍ୟରେ ବହିଯାଇ ସାଗର ଗର୍ଭରେ ମିଶିଗଲେ ଓ ଶେଷରେ ପାତାଳପୁରରେ ପ୍ରବେଶକରି କପିଳ ମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ପବିତ୍ର ଜଳର ସ୍ପର୍ଶରେ ଅଗ୍ନି ଲିଭିଗଲା ଏବଂ ସଗରଙ୍କ ପୁତ୍ରମାନେ ମୁକ୍ତିପାଇ ଓ ସୁନ୍ଦର ରୂପ ପାଇ ସ୍ୱର୍ଗ ଧାମକୁ ଚାଲିଗଲେ ।

ଭଗୀରଥ ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିଥିବାରୁ ଗଙ୍ଗାଙ୍କର ଅନ୍ୟ ନାମ 'ଭାଗୀରଥୀ' ହୋଇଅଛି ।



## ପତିବ୍ରତା ସାବିତ୍ରୀ

ପୁରାଣକାଳରେ ମଦ୍ର ଦେଶରେ ଅଶ୍ୱପତି ନାମରେ ଜଣେ ରାଜା ଥିଲେ । ତାଙ୍କ କନ୍ୟାଙ୍କ ନାମ ସାବିତ୍ରୀ । କନ୍ୟାର ବିବାହ ନିମନ୍ତେ ଅଶ୍ୱପତି ଉପଯୁକ୍ତ ପାତ୍ର ଅନ୍ୱେଷଣ କଲେ କିନ୍ତୁ କେହି ତାଙ୍କୁ ବିବାହ କରିବା ନିମନ୍ତେ ସମ୍ମତ ହେଲେ ନାହିଁ । ଲୋକେ ସାବିତ୍ରୀଙ୍କ ଅପୂର୍ବ ତେଜ ଓ ରୂପ ଦେଖି ଭାବିଲେ, ସାବିତ୍ରୀ ନାରୀ ନୁହନ୍ତି, ଦେବୀ । ତାଙ୍କୁ ଯେ ବିବାହ କରିବ ତାହାର ଅମଙ୍ଗଳ ହେବ ।

ଅଶ୍ୱପତି ଝିଅପାଇଁ ଉପଯୁକ୍ତ ପାତ୍ର ପାଇ ପାରିଲେ ନାହିଁ । ତାଙ୍କ ମନରେ ବିଶେଷ ଦୁଃଖ ହେଲା । ଶେଷରେ ସେ ଦିନେ ସାବିତ୍ରୀଙ୍କୁ କହିଲେ, "ମା ! ମୁଁ ତୋତେ ପାଇ ପରମ ସୁଖୀ ହୋଇଛି ଓ ମୋର ରାଜବଂଶ ଉଜ୍ଜ୍ୱଳ ହୋଇଛି । ବର୍ତ୍ତମାନ ଉପଯୁକ୍ତ ପାତ୍ର ସଙ୍ଗେ ତୋର ବିବାହ ହେଲେ ମୁଁ ଅଧିକ ସୁଖୀ ହେବି । ତୁ ଆଜି ବୃଦ୍ଧମନ୍ତ୍ରୀଙ୍କ ସଙ୍ଗରେ ଦେଶ ଭ୍ରମଣ କରିବାକୁ ଯାଇ ତୋର ମନମୁତାବକ ଯୋଗ୍ୟପାତ୍ର ସ୍ଥିର କର ।" ପିତାଙ୍କର ଆଦେଶ ମାନି ସାବିତ୍ରୀ ଦେଶ ଭ୍ରମଣରେ ବାହାରି ଗଲେ ।

କେତେ ଦିନ ଅତିବାହିତ ହେଲା । ଦିନେ ରାଜା ଅଶ୍ୱପତି ରାଜସଭାରେ ବସିଛନ୍ତି । ପାଖରେ ମହର୍ଷି ନାରଦ ଥାନ୍ତି । ଠିକ୍ ଏହି ସମୟରେ ସାବିତ୍ରୀ ତୀର୍ଥ ଭ୍ରମଣରୁ ଫେରିଆସି ପିତା ଓ ମହର୍ଷି ନାରଦଙ୍କର ଚରଣ ବନ୍ଦନା କଲେ । ଅଶ୍ୱପତି ପ୍ରଶ୍ନକଲେ, "ମା ! ମୋର ଇଚ୍ଛା ପୂରଣ ହୋଇଛି ତ ?" ସାବିତ୍ରୀ ଉତ୍ତର କଲେ, "ପିତା ! ଶାଲ୍ୱ ଦେଶର ରାଜା ଦ୍ୟୁମତ୍‌ସେନଙ୍କର ପୁତ୍ର ସତ୍ୟବାନଙ୍କୁ ମୁଁ ପତିରୂପେ ବରଣ କରିଛି ।"

ସତ୍ୟବାନଙ୍କର ନାମ ଶୁଣି ମହର୍ଷି ନାରଦ ଚମକି ପଡ଼ିଲେ । ଏହା ଦେଖି ରାଜା ପଚାରିଲେ, "ମହର୍ଷେ ! ଆପଣ ଏପରି ବିଚଳିତ ହେଲେ କାହିଁକି ?"

ନାରଦ—ସାବିତ୍ରୀଙ୍କୁ ସତ୍ୟବାନଙ୍କ ସହିତ ବିବାହ କରାଇବା ଠିକ୍ ନୁହେଁ ।

ଅଶ୍ୱପତି—କାହିଁକି ? ସେ କ'ଣ ଗୁଣବାନ ନୁହନ୍ତି ?

ନାରଦ—ସେ ପ୍ରକୃତ ଗୁଣବାନ ଓ ରୂପବାନ ମଧ୍ୟ । ତାଙ୍କ ପିତା ଦ୍ୟୁମତ୍‌ସେନ ଅନ୍ଧଥିବାରୁ ଶତ୍ରୁମାନେ ତାଙ୍କୁ ରାଜ୍ୟରୁ ତଡ଼ିଦେଇ ଅଛନ୍ତି । ତେଣୁ ସତ୍ୟବାନ ଋଷିକୁମାର ଭଳି ଅରଣ୍ୟରେ ବାସ କରୁଅଛନ୍ତି ।

ରାଜା—ଏହି କାରଣରୁ କଣ ଆପଣ ସତ୍ୟବାନ୍‌ଙ୍କୁ ପସନ୍ଦ କରୁନାହାନ୍ତି ?

ନାରଦ—ନାଁ ମହାରାଜ ! ସତ୍ୟବାନ୍ ଅଳ୍ପାୟୁ, ଏଥିପାଇଁ ମୁଁ ମନା କରୁଅଛି । ଆଜିଠାରୁ ଯେଉଁଦିନ ଏକବର୍ଷ ପୂର୍ଣ୍ଣ ହେବ ସେହିଦିନ ସତ୍ୟବାନ୍‌ଙ୍କର ମୃତ୍ୟୁ ଘଟିବ ।

ରାଜା—ମା ! ମହର୍ଷି ନାରଦ ଯାହା କହିଲେ ତାହା ଶୁଣିଲୁ ତ !

ସାବିତ୍ରୀ—ପିତା ! ମୁଁ ସତ୍ୟବାନଙ୍କୁ ପତିରୂପେ ବାଛି ସାରିଛି । ବର୍ତ୍ତମାନ ମୁଁ କିପରି ଅନ୍ୟକୁ ପତିରୂପେ ବରଣ କରି ପାରିବି ?

ଅଶ୍ୱପତି ବାଧ୍ୟହୋଇ ସତ୍ୟବାନଙ୍କ ସହିତ ସାବିତ୍ରୀଙ୍କର ବିବାହ ସମ୍ପାଦନ କଲେ । ସାବିତ୍ରୀ ତପୋବନକୁ ଯାଇ ଶାଶୁ ଓ ଶ୍ୱଶୁରଙ୍କ ସେବାରେ ମନଦେଲେ । ଆଶ୍ରମବାସୀମାନେ ସାବିତ୍ରୀଙ୍କଠାରୁ ମଧୁର ବ୍ୟବହାର ପାଇ ତାଙ୍କୁ ଖୁବ୍ ଆଦର କଲେ ।

ଦିନପରେ ଦିନ ଗଡ଼ିଚାଲିଲା । କ୍ରମେ ସତ୍ୟବାନଙ୍କର ମୃତ୍ୟୁ ଦିବସ ଉପସ୍ଥିତ ହେଲା । ଅନ୍ୟ ଦିନପରି ସେଦିନ ମଧ୍ୟ ସତ୍ୟବାନ୍ କାଷ୍ଠ ସଂଗ୍ରହ କରିବା ନିମନ୍ତେ ବନଭିତରକୁ ଯିବାକୁ ପ୍ରସ୍ତୁତ ହେଲେ । ସାବିତ୍ରୀ ତାଂକ ସଙ୍ଗରେ ବାହାରିଲେ । ବନମଧ୍ୟରେ କେଉଁଠି ପକ୍ଷୀମାନେ ମଧୁର ଗାନ କରୁଥାନ୍ତି କେଉଁଠାରେ ହରିଣପଲ ଦ୍ରୁତବେଗରେ ଦୌଡ଼ୁଥାନ୍ତି, କାହିଁ ବା ନିର୍ମଳ ଝରଣା କଳକଳ ନାଦରେ ବହିଯାଉଥାଏ । ସତ୍ୟବାନ ସାବିତ୍ରୀଂକୁ ଏସବୁ ଦେଖାଇ ଚାଲିଥାନ୍ତି । କିନ୍ତୁ ସାବିତ୍ରୀଂକର ମନ କାହିଁରେ ଲାଗୁନଥାଏ । କେବଳ ନାରଦଂକ କଥା ଭାବି ସେ ବଡ଼ ଚିନ୍ତାରେ ଥାନ୍ତି ।

ସତ୍ୟବାନ ଗୋଟିଏ ଗଛରେ ଚଢି କାଠ କାଟିଲେ । କିଛି ସମୟପରେ ସେ ଗଛରୁ ଓହ୍ଲାଇ ଆସି ସାବିତ୍ରୀଙ୍କୁ କହିଲେ, "ପ୍ରିୟେ ! ମୋର ଦେହ ଅବଶ ହୋଇ ଯାଉଛି । ମୋତେ ଟିକିଏ ଧର ।" ଏହା କହୁଁ କହୁଁ ମୂର୍ଛିତ ହୋଇ ପଡ଼ିଲେ । ତାଙ୍କୁ ସଚେତ କରାଇବା ନିମନ୍ତେ ସାବିତ୍ରୀ କେତେ ଯତ୍ନ କଲେ, କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । ସେ ନିଜର ସ୍ୱାମୀଙ୍କୁ କୋଳରେ ଶୁଆଇ ଏକାକିନୀ ବନମଧ୍ୟରେ ବସି ରହିଲେ । କ୍ରମେ ସନ୍ଧ୍ୟା ହେଲା ଓ ଚାରିଆଡ଼େ ଅନ୍ଧକାର ଘୋଟିଗଲା । ସାବିତ୍ରୀଙ୍କ ନୟନ ଯୁଗଳରୁ ଅଶ୍ରୁଧାର ବହି ଯାଉଥାଏ । ତଥାପି ସେ ଧୈର୍ଯ୍ୟ-ଧରି ବସିରହିଥାନ୍ତି ।

ଅର୍ଦ୍ଧରାତ୍ର, ଚାରିଆଡ଼େ ନିସ୍ତବ୍ଧ ହଠାତ୍ ଜଣେ ତେଜସ୍ୱୀ ପୁରୁଷ ସେଠାରେ, ଉପସ୍ଥିତ ହେଲେ । ସାବିତ୍ରୀ ତାଙ୍କୁ ଦେଖି ପଚାରିଲେ, "ଆପଣ କିଏ ? କାହିଁକି ଏଠାକୁ ଆସିଛନ୍ତି ?" ସେ ଉତ୍ତର ଦେଲେ, "ମୁଁ ଯମରାଜ, ଆଜି ସତ୍ୟବାନଙ୍କର ପରମାୟୁ ଶେଷ ହୋଇଛି । ମୁଁ ତାଙ୍କୁ ନେବାକୁ ଆସିଛି ।" ଏହା କହି ଯମରାଜା ସତ୍ୟବାନଙ୍କର ଆତ୍ମାକୁ ଘେନି ପ୍ରସ୍ଥାନ କଲେ । ସାବିତ୍ରୀ ସ୍ୱାମୀଙ୍କର ମୃତଦେହ ତଳେ ରଖିଦେଇ ଯମରାଜାଙ୍କ ପଛେ ପଛେ ଚାଲିଲେ । ଏହା ଦେଖି ଯମରାଜା କହିଲେ, "ସାବିତ୍ରୀ ! ମୋ ପଛରେ କୁଆଡ଼େ କାହିଁକି ଆସୁଛ ? ଫେରିଯାଅ ।"

ସାବିତ୍ରୀ—ପ୍ରଭୋ ! ସ୍ୱାମୀ ମୋର ଅଶ୍ରୁସ୍ପୃଷ୍ଟଲ । ତାଙ୍କୁ ଛାଡ଼ି କୁଆଡ଼େ ଯିବ ? ପୁଅକୁ ନ ଦେଖିଲେ ଶାଶୁଶ୍ୱଶୁରଙ୍କର ମଧ୍ୟ ଦୁଃଖର ସୀମା ରହିବ ନାହିଁ । ସେମାନଙ୍କୁ କ'ଣ କହି ବୋଧ ଦେବ ?

ଯମରାଜ—ସାବିତ୍ରୀ ! ମୁଁ ତୁମ୍ଭ ଉପରେ ସନ୍ତୁଷ୍ଟ ହୋଇଅଛି । ସତ୍ୟବାନଙ୍କ ଜୀବନ ବ୍ୟତୀତ ଯେଉଁ ବର ମାଗିବ ତାହା ଦେବାକୁ ପ୍ରସ୍ତୁତ ଅଛି ।

ସାବିତ୍ରୀ—ମୋର ଶ୍ୱଶୁର ଅନ୍ଧ, ପୁଣି ସେ ରାଜ୍ୟ ହରାଇଛନ୍ତି । ତାଙ୍କୁ ଚକ୍ଷୁ ଓ ରାଜ୍ୟ ଦାନ କରନ୍ତୁ ।

ଯମରାଜ—ହେଉ; ଏ ଦୁଇଟି ବର ଦେଲି । ଏବେ ଫେରିଯାଅ ।

ସାବିତ୍ରୀ ନ ଫେରି ପୁଣି ଯମରାଜାଙ୍କ ପଛେ ପଛେ ଚାଲିଲେ, ଏଥିରେ ଯମରାଜ ପୁଣି କହିଲେ, "ସାବିତ୍ରୀ ! ବର ତ ଦେଲି । ପୁଣି କାହିଁକି ମୋ ପଛେ ପଛେ ଆସୁଛ ? ମୁଁ କେବେ ସତ୍ୟବାନଙ୍କ ଜୀବନ ଫେରାଇ ପାରିବି ନାହିଁ । ଆଉ ଯାହା ମାଗିବ ବରଂ ତାହା ଦେବି ।"

ସାବିତ୍ରୀ—ଦେବ, ମୋର ପିତା ଅପୁତ୍ରକ, ତାଙ୍କର ଶତପୁତ୍ର ହେଉ ।

ଯମରାଜ—ଅଚ୍ଛା, ତାହା ହିଁ ହେଉ, ଏଥର ଫେରିଯାଅ ।

ଏହା କହି ଯମରାଜ ଚାଲିବାକୁ ଲାଗିଲେ, କିନ୍ତୁ ସାବିତ୍ରୀ ପୂର୍ବପରି ତାଙ୍କ ପଛେ ପଛେ ଚାଲିଥାନ୍ତି । ଏହା ଦେଖି ଯମରାଜା କିଛିଏ ନୀରବ ଚିନ୍ତା କରିଲେ,



"ସାବିତ୍ରୀ ! ମୁଁ ଏତେ ବର ଦେଲି, ତୁମ୍ଭର ମନବୋଧ ହେଉନାହିଁ । ଏଣିକି ଜାଣିଶୁଣି ବିପଦକୁ ବରଣ କର ନାହିଁ । ମୁହୂର୍ତ୍ତକ ମଧ୍ୟରେ ମୁଁ ଅଦୃଶ୍ୟ ହୋଇଯିବି । ତେବେ, ସେତେବେଳେ ତୁମର ଅବସ୍ଥା କ'ଣ ହେବ ? ତୁମେ ଘରକୁ ଫେରିଯାଅ ।"

ସାବିତ୍ରୀ—ସ୍ୱାମୀ ମୋର ଦେବତା, ତାଙ୍କ ଲାଗି ମୋର ଜୀବନ ଚାଲିଗଲେ ମୁଁ କାନ୍ଦନ୍ତି, ଭାଗ୍ୟବତୀ ବୋଲି ମନେ କରିବି । ମୋତେ ତାଙ୍କ ସାଙ୍ଗରେ ନିଅନ୍ତୁ ।

ଯମରାଜ—ଧନ୍ୟ ସାବିତ୍ରୀ ! ତୁମ୍ଭର ସ୍ୱାମୀଭକ୍ତି ଦେଖି ମୁଁ ଅତ୍ୟନ୍ତ ମୁଗ୍ଧ ହୋଇଅଛି । ସତ୍ୟବାନଙ୍କ ଜୀବନ ଛଡା ମୁଁ ତୁମ୍ଭଙ୍କୁ ଆଉ ଗୋଟିଏ ବର ଦେବି; କି ବର ମାଗୁଛ ମାଗ ।

ସାବିତ୍ରୀ—ପ୍ରଭୋ ! ମୋତେ ଆଶୀର୍ବାଦ କରନ୍ତୁ । ମୋର ଶତପୁତ୍ର ଲାଭ ହେଉ ।

ଯମରାଜା—ତଥାସ୍ତୁ, ତୁମ୍ଭେ ଶୀଘ୍ର ଓପଲଟିଯାଅ ।

ଯମରାଜ କିଛି ଦୂର ଯାଇ ପଛକୁ ଚାହିଁ ଦେଖିଲେ ତ ସାବିତ୍ରୀ ପୂର୍ବପରି ତାଙ୍କ ପଛେ ପଛେ ଚାଲିଛନ୍ତି । ସେ ରାଗିଯାଇ କର୍କଶ ସ୍ୱରରେ କହିଲେ, "ସାବିତ୍ରୀ ! ମୁଁ ତୁମ୍ଭଙ୍କୁ ଏତେ ବର ଦେଲି, ତଥାପି ସନ୍ତୁଷ୍ଟ ନ ହୋଇ ମୋ ପଛରେ ଆସୁଛ କାହିଁକି ?"

ସାବିତ୍ରୀ—ଆପଣ ଧର୍ମରାଜ, ମୋତେ ଶତପୁତ୍ର ଲାଭ ପାଇଁ ବର ଦେଲେ, ପୁଣି ସ୍ୱାମୀଙ୍କ ଆତ୍ମାକୁ କପଟ ସଙ୍ଗରେ ନେଇ ଯାଉଅଛନ୍ତି

ଯମରାଜା ନିଜର ଭୁଲ ବୁଝିପାରି ଲଜ୍ଜିତ ହେଲେ ଏବଂ ସାବିତ୍ରୀଙ୍କୁ କହିଲେ, "ସାବିତ୍ରୀ ମୁଁ ତୁମ୍ଭ ସତୀତ୍ୱ

ନିକଟରେ ପରାଜିତ । ମୋର ବର ବ୍ୟର୍ଥ ହେବନାହିଁ । ପୁଣି ମୁଁ ଆଶୀର୍ବାଦ କରୁଛି, ତୁମ୍ଭେ ସତ୍ୟବାନଙ୍କ ସହିତ ସୁଖଶାନ୍ତିରେ ବାସକର ।"

ରାତି ପାହିଗଲା । ପରଦିନ ସକାଳେ ସତ୍ୟବାନ ଓ ସାବିତ୍ରୀ ଆଶ୍ରମରେ ଉପସ୍ଥିତ ହେଲେ । ସେ ଦିନ ଜ୍ୟେଷ୍ଠମାସ ଅମାବାସ୍ୟା । ବର୍ଷର ଏହି ଦିନଟିକୁ ସଧବା ସ୍ତ୍ରୀ ଲୋକମାନେ ପବିତ୍ର ମନେକରି ନିଜ ନିଜ ସ୍ୱାମୀଙ୍କ ଦୀର୍ଘଜୀବନ କାମନା କରି ସାବିତ୍ରୀ ବ୍ରତ ପାଳନ କରନ୍ତି । ଏଣୁ ଏ ଦିନକୁ 'ସାବିତ୍ରୀ ଅମାବାସ୍ୟା' କୁହାଯାଏ ।



## ଶେନ-ପରୀକ୍ଷା

ବହୁବର୍ଷ ପୂର୍ବେ ଆମ ଦେଶରେ ଉଶୀନର ନାମରେ ଜଣେ ରାଜା ଥିଲେ । ତାଙ୍କ ଭଳି ଦାନୀ ଓ ଧାର୍ମିକ ରାଜା ପୃଥିବୀରେ କ୍ୱଚିତ୍ ଜନ୍ମଗ୍ରହଣ କରିଅଛନ୍ତି । ତାଙ୍କ ଯଶ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁର ବ୍ୟାପିଥିଲା ।

ଦିନେ ଉଶୀନର ରାଜସଭାରେ ବସିଅଛନ୍ତି । ପାଖରେ ବହୁ ପାତ୍ରମନ୍ତ୍ରୀ ଥାନ୍ତି । ଏହି ସମୟରେ ଗୋଟିଏ କପୋତ ଉଡ଼ିଆସି ରାଜାଙ୍କ କୋଳରେ ବସିଗଲା ଏବଂ ଅତି କାତର ସ୍ୱରରେ କହିଲା, ' ମହାରାଜ ! ମୋତେ ଗୋଟାଏ ବାଜପକ୍ଷୀ

ଖାଇବାକୁ ଗୋଡ଼ାଇଛି । ତା ମୁହଁରୁ ମୋତେ ରକ୍ଷା କରନ୍ତୁ ।" ଏହା ଶୁଣି ରଜା କହିଲେ, "ଭୟ କରନାହିଁ । ମୋ ପାଖରେ ଥିବାଯାଏ ତୁମ୍ଭର କେହି କିଛି ଅନିଷ୍ଟ କରି ପାରିବ ନାହିଁ ।"

ସଙ୍ଗେ ସଙ୍ଗେ ଛଞ୍ଚାଣଟି ଉଡ଼ି ଆସି ରଜାଙ୍କୁ କହିଲେ, "ମହାରଜ ! ମୁଁ ବଡ଼ କ୍ଷୁଧାର୍ତ୍ତ । ଖାଇବା ଆଶାରେ ଏ କପୋତଟିକୁ ଗୋଡ଼ାଉ ଅଛି । ଆପଣ ଶୀଘ୍ର ତାହାକୁ ଛାଡ଼ି ଦିଅନ୍ତୁ । ତାକୁ ପାଇଲେ ମୋର କ୍ଷୁଧା ଦୂର ହେବ ।"

ଉଶୀନର—କପୋତ ପ୍ରାଣ ବିକଳରେ ମୋର ଆଶ୍ରୟ ନେଇଛି । ମୁଁ ରଜା; ଆଶ୍ରିତକୁ ରକ୍ଷା କରିବା ମୋର ଧର୍ମ । ମୁଁ କିପରି ତାକୁ ଛାଡ଼ିଦେବି ?

ଛଞ୍ଚାଣ – ମୁଁ ଆପଣଙ୍କ ରଜ୍ୟରେ ବାସକରେ । ମୋର ଜୀବନ ରକ୍ଷା କରିବା ମଧ୍ୟ ଆପଣଙ୍କର କର୍ତ୍ତବ୍ୟ । ବର୍ତ୍ତମାନ କ୍ଷୁଧାରେ ମୋର ପ୍ରାଣ ବାହାରି ଯାଉଛି । ଜଣକୁ ମାରି ଅନ୍ୟ ଜଣକୁ ରକ୍ଷା କଲେ ଆପଣଙ୍କର କି ପୁଣ୍ୟ ହେବ ?

ଉଶୀନର—କପୋତ ପରିବର୍ତ୍ତେ ତୁମେ ଅନ୍ୟ ପକ୍ଷୀ ଶିକାର କରି ନିଜର କ୍ଷୁଧା ଶାନ୍ତ କର ।

ଛଞ୍ଚାଣ—ବେଳକୁବେଳ ମୋର ଭୋକ ବଢ଼ୁଛି, ଅନ୍ୟ ପକ୍ଷୀ ଶିକାର କରିବାକୁ ଦେହରେ ବଳନାହିଁ । ଦୟାକରି କପୋତଟିକୁ ଫେରାଇ ଦିଅନ୍ତୁ, ତାହା ନ ହେଲେ ଆପଣଙ୍କର ପାପ ହେବ ।

ଉଶୀନର—ଶରଣାଗତକୁ ଶତ୍ରୁ ହାତରେ ଛାଡ଼ିଦେବା ଅଧିକ ପାପ। ମୁଁ ମଧ୍ୟ କପୋତର ପ୍ରାଣ ରକ୍ଷା କରିବାକୁ ସତ୍ୟ କରିଛି ! ତାହା ଭଙ୍ଗ କରିବି କିପରି ? ଏଣୁ ପିଣ୍ଡରେ ପ୍ରାଣ ଥିବା ପର୍ଯ୍ୟନ୍ତ ମୁଁ ଏହାକୁ କଦାପି ଛାଡ଼ି ଦେଇ ପାରିବି ନାହିଁ । କପୋତଟିକୁ ଛାଡ଼ି ଅନ୍ୟ କୌଣସି ମାଂସ ମାଗ, ମୁଁ ତାହା କଷ୍ଟସ୍ପ ତୁମ୍ଭଙ୍କୁ ଦେବି ।

ଛଞ୍ଚାଣ—ମହାରାଜ ! କପୋତ ମାଂସ ଛଡ଼ା ମୋତେ ଅନ୍ୟ କୌଣସି ଜୀବର ମାଂସ ସ୍ୱାଦୁ ଲାଗେ ନାହିଁ । ଯଦି କପୋତଟିକୁ ବଞ୍ଚାଇବାକୁ ଆପଣଙ୍କର ଏତେ ଇଚ୍ଛା; ତେବେ ଆପଣ ନିଜ ଶରୀରରୁ ଠିକ୍ କପୋତ ଓଜନର ମାଂସ କାଟି ଦିଅନ୍ତୁ । ତାହା ପାଇଲେ ମୋର ଆଉ କୌଣସି ଆପତ୍ତି ରହିବ ନାହିଁ ।

ଛଞ୍ଚାଣର କଥା ଶୁଣି ପାଖରେ ଥିବା ଲୋକେ ଚମକି ପଡ଼ିଲେ । କିନ୍ତୁ ଉଶୀନର ତିଳେ ମାତ୍ର ବିଚଳିତ ହେଲେ ନାହିଁ । ସେ ଜଣେ ଭୃତ୍ୟକୁ ଆଦେଶ ଦେଲେ "ଶୀଘ୍ର ଗୋଟିଏ ଛୁରୀ ଓ ତରାଜୁ ଆଣ ।" ଛୁରୀ ଓ ତରାଜୁ ଆସିଲା । ରାଜା କପୋତକୁ ତରାଜୁର ଏକ ପାଖରେ ରଖିଲେ, ଅନ୍ୟ ପାଖରେ ନିଜ ଦେହରୁ ମାଂସ କାଟି ଥୁଆଇଲେ । କିନ୍ତୁ କପୋତ ଓଜନରେ ବେଶୀ ହେଲା । ତେଣୁ ରାଜା ପୁଣି ନିଜ ଦେହରୁ ଟିକିଏ ମାଂସ କାଟି ତରାଜୁରେ ରଖିଲେ । ତଥାପି ଓଜନରେ ଦୁଇପାଖ ସମାନ ହେଲାନାହିଁ । ରାଜା ନିଜ ଦେହରୁ ଟିକଟିଏ ମାଂସ କାଟି ତରାଜୁରେ ରଖିଲେ ।

ତଥାପି ପ୍ରତିଥର କପୋତର ଓଜନ ଅଧିକ ହେଲା, ଶେଷରେ ରାଜା ଉପାୟ ନ ପାଇ ନିଜେ ତରାଜୁରେ ବସି ପଡ଼ିଲେ ।



ହଠାତ୍ ସ୍ୱର୍ଗରୁ ରାଜାଙ୍କ ଉପରେ ପୁଷ୍ପ ବୃଷ୍ଟି ହେଲା । ସେ ଦେଖିଲେ, କପୋତ ନାହିଁ କି ଶଞ୍ଚାଣ ନାହିଁ । ପକ୍ଷୀ ଦୁଇଟି ପରିବର୍ତ୍ତେ ଦୁଇଜଣ ଦିବ୍ୟ ପୁରୁଷ ତାଙ୍କ ଆଗରେ ଠିଆ ହୋଇ ଅଛନ୍ତି । ସେମାନେ କହିଲେ, "ମହାରାଜ ! ଆମେ ଦୁହେଁ ଇନ୍ଦ୍ର ଓ ଅଗ୍ନି । ଆପଣଙ୍କ ପୁଣ୍ୟବଳ ପରୀକ୍ଷା କରିବା ନିମନ୍ତେ ପକ୍ଷୀରୂପେ ଆସିଥିଲୁ । ଆପଣଙ୍କର ତ୍ୟାଗ ଓ ଧର୍ମଭାବ ଦେଖି ଦୁହେଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛୁ । ଆମେ ଆଶୀର୍ବାଦ କରୁଛୁ ଆପଣଙ୍କ କ୍ଷତ ଶୀଘ୍ର ଆରୋଗ୍ୟ ହେଉ ଓ ଆପଣ ପରମ ସୁଖରେ ପ୍ରଜା ପାଳନ କରନ୍ତୁ ।" ଏହା କହି ଦୁହେଁ ଅଦୃଶ୍ୟ ହୋଇଗଲେ ।

ଏ ଅଦ୍ଭୁତ ଦୃଶ୍ୟ ଦେଖି ଲୋକେ ଅତ୍ୟନ୍ତ ବିସ୍ମିତ ହେଲେ ଏବଂ ତାଙ୍କୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ ।



## ସାଧୁସଙ୍ଗର ଫଳ

ବହୁଦିନ ପୂର୍ବେ ରତ୍ନାକର ନାମରେ ଜଣେ ଦସ୍ୟୁ ଥିଲା । ସେ ବଣ ମଧ୍ୟରେ ରହି ଯାହାକୁ ଦେଖୁଥିଲା ତାଠାରୁ ଟଙ୍କା ପଇସା ଲୁଟିକରି ନେଉଥିଲା । ଲୋକଙ୍କୁ ଆକ୍ରମଣ ବି କରୁଥିଲା । ବେଳ ପଡ଼ିଲେ ସେମାନଙ୍କୁ ହତ୍ୟା କରିବାକୁ ତିଳେ ହେଲେ ସେ କୁଣ୍ଠିତ ହେଉ ନ ଥିଲା ।

ଥରେ ନାରଦ ମହର୍ଷି ସେହି ଅରଣ୍ୟ ମଧ୍ୟରେ ଯାଉଥିଲେ । ତାଙ୍କୁ ଦେଖି ରତ୍ନାକର ଦୌଡ଼ି ଆସିଲା ଓ ବାଟ ଓଗାଳିଲା । ନାରଦ ଏହାର କାରଣ ପଚାରିବାରୁ ସେ କହିଲା, "ତୁମ୍ଭେ କ'ଣ ରତ୍ନାକର ଡକାୟତର ନାଁ ଶୁଣିନାହଁ । ଆଉ ପଚାରୁଛ କଣ ? ତୁମ୍ଭ ପାଖରେ ଯାହା ଅଛି ଶୀଘ୍ର ଦିଅ, ନୋହିଲେ ଏହି ଛୁରୀରେ ତୁମ୍ଭର ତଣ୍ଟି କାଟିଦେବି ।"

ରତ୍ନାକରର କଥା ଶୁଣି ନାରଦ ଆଦୌ ଭୀତ ହେଲେ ନାହିଁ । ସେ ତ ସାଧାରଣ ଲୋକ ନୁହନ୍ତି; ପୁଣି ତାଙ୍କଠାରେ ଅଦ୍ଭୁତ ଶକ୍ତି ଅଛି । ଛାର ମନୁଷ୍ୟ ତାଙ୍କର ବା କ'ଣ କରିବ ?

ନାରଦ ରତ୍ନାକରକୁ କହିଲେ, "ବାବୁ ! ମୁଁ ତ ସନ୍ନ୍ୟାସୀ । ବଣର ଫଳମୂଳ ଖାଇ ଜୀବନ ଧାରଣ କରେଁ । ମୋ ପାଖରେ ଧନ କାହୁଁ ଆସିବ ? ଅକାରଣ ମୋତେ ହତ୍ୟା କରି କାହିଁକି ପାପ ଅର୍ଜ୍ଜନ କରିବୁ ?" ପାପ କଥା ଶୁଣି ରତ୍ନାକର କହିଲା, 'ପେଟ ପୋଷ ନାହିଁ ଦୋଷ । ଡକାୟତି ମୋର ଜୀବିକା, ପରିବାରର ପ୍ରତିପୋଷଣ ପାଇଁ ମୁଁ ଏ ବୃତ୍ତି ଆଚରଣ କରି ଆସୁଅଛି, ଏଥିରେ ପାପ ହେଲେ ମୋର ସ୍ତ୍ରୀ, ପୁତ୍ରଆଦି ସେଥିରେ ଭାଗୀ ହେବେ ।" ନାରଦ କହିଲେ, "ବାମ ହାତର ପାପ ଡାହାଣ ହାତ ଭୋଗେ ନାହିଁ । ଯେ ଯେଉଁ କର୍ମ କରିବ ସେ ନିଶ୍ଚୟ ତାହାର ଫଳ ଭୋଗ କରିବ । ପରିବାରର ପ୍ରତିପୋଷଣ ଦାୟିତ୍ୱ ତୋର, ଏଣୁ ପରିବାରର କୌଣସି ବ୍ୟକ୍ତି ତୋ ପାପରେ କଦାପି ଭାଗୀ ନୁହେଁ । ଯଦି ମୋ କଥାରେ ବିଶ୍ୱାସ ନ ହେଉଥାଏ, ତେବେ ଯାଇ ତୋର ସ୍ତ୍ରୀ, ପୁତ୍ର, କନ୍ୟା ଓ ବନ୍ଧୁ ବାନ୍ଧବ ସମସ୍ତଙ୍କୁ ପଚାରି ଆ । ମୁଁ ଏଠାରେ ଅଛି, ତୁ ଫେରିବାଯାଏ ନିଶ୍ଚୟ ଅପେକ୍ଷା କରି ରହିଥିବି ।"

ରତ୍ନାକର ମନରେ ବଡ଼ ସନ୍ଦେହ ଜାତ ହେଲା । ସେ ଘରକୁ ଫେରିଯାଇ ପ୍ରଥମେ ନିଜର ସ୍ତ୍ରୀକୁ ପଚାରିଲା, "ଚୋରି ଡକାୟତି କରି ମୁଁ ତୁମକୁ ପୋଷୁଛି । ଏଥିରେ ଯେଉଁ ପାପ ହେଉଛି, ସେଥିରେ କ'ଣ ତୁମର ଭାଗ ନାହିଁ ?" ସ୍ତ୍ରୀ ଉତ୍ତର ଦେଲା, "ସ୍ତ୍ରୀକୁ ରକ୍ଷା କରିବା ସ୍ୱାମୀର ଧର୍ମ । ଏଥିଲାଗି ତୁମେ ପାପ କଲେ, ସେ ପାପ ତୁମର, ମୋର ନୁହେଁ ।" ତହୁଁ ରତ୍ନାକର ନିଜର, ପୁଅ, ଝିଅ ଓ ବନ୍ଧୁ

ତାଙ୍କଠାରୁ ଏଭଳି ପ୍ରଶ୍ନ କଲା । ପ୍ରତ୍ୟେକେ ଉତ୍ତର ଦେଲେ, "ମନୁଷ୍ୟ ନିଜର ଭଲ ମନ୍ଦ କାର୍ଯ୍ୟ ନିମନ୍ତେ ନିଜେ ଦାୟୀ, ଅନ୍ୟ କେହି ନୁହେଁ ।" ଏହା ଶୁଣି ରତ୍ନାକରର ମନ ଘୁରି ପଡ଼ିଲା । ସେ ନିଜକୁ ମହାପାପୀ ବୋଲି ମନେକଲା । ନାରଦଙ୍କ ନିକଟକୁ ଫେରିଯାଇ ଜଣାଇଲା, "ପ୍ରଭୋ ! ମୁଁ ଜୀବନରେ ବହୁ ପାପ କଲିଣି । ଏଥିରୁ କିପରି ଉଦ୍ଧାର ପାଇବି, ଦୟାକରି ତାହାର ଉପାୟ କହନ୍ତୁ ।"

ରତ୍ନାକରର ବ୍ୟାକୁଳତା ଦେଖି ନାରଦ କହିଲେ, "ଧୈର୍ଯ୍ୟଧର ! ପାପରୁ ରକ୍ଷା ପାଇବାର ସହଜ ଉପାୟ ଅଛି । ଆଜିଠାରୁ ତୁ ଏହିଠାରେ ବସି 'ରାମ ନାମ' ଜପକର । ତାହାହେଲେ ତୋର ସମସ୍ତ ପାପ ଦୂର ହେବ ।" ଏହା କହି ନାରଦ ଚାଲିଗଲେ ।

ରତ୍ନାକର ଆଉ ଗ୍ରାମକୁ ଗଲା ନାହିଁ । ସେହି ଦିନଠାରୁ ଘନ ଅରଣ୍ୟ ମଧ୍ୟରେ ବସି 'ରାମ ନାମ' ଜପ କଲା । କିନ୍ତୁ ସେ ଏପରି ପାଷାଣ୍ଡ ଥିଲା ଯେ ପ୍ରଥମେ ପ୍ରଥମେ 'ରାମ ରାମ' କହି ନ ପାରି 'ମରା ମରା' କହିଲା, ପରେ ପରେ 'ରାମ ରାମ' ବୋଲି ଉଚ୍ଚାରଣ କଲା ।

ରତ୍ନାକର ଜପ କରିବା ସମୟରେ ଦିନରେ ଥରେ ମାତ୍ର ଫଳମୂଳ ଖାଇଲା । ପରେ ଦୁଇଦିନ, ଚାରିଦିନ ଅନ୍ତରରେ ଥରେ ଆସନରୁ ଉଠି ଆହାର କଲା, ଏଭଳି କ୍ରମେ କ୍ରମେ ଖାଦ୍ୟ ପାନୀୟ ପରିତ୍ୟାଗ କରି ଶେଷରେ କେବଳ ପବନ ଆହାର କରି ଏକ ଆସନରେ ବସି ରହିଲା । ତାହାର

ଜଗତର କୌଣସି କଥା ତାଙ୍କୁ ସ୍ପର୍ଶ କଲା ନାହିଁ । ଖରା, ବର୍ଷା, ଶୀତ କଷ୍ଟ ତାଙ୍କୁ ଜଣାଗଲା ନାହିଁ । ଶେଷରେ ସେ ନିଜର ଦେହକୁ ମଧ୍ୟ ଭୁଲିଗଲା । ବହୁ ବର୍ଷ ବିତିଗଲା । ଶେଷରେ ତାହାର ଶରୀରପଟେ ବଡ଼ ଉଇହୁଙ୍କା ହୋଇଗଲା । ରତ୍ନାକର ତା ମଧ୍ୟରେ କେବଳ ଅସ୍ଥି ଘେନି ବସି ରହିଥାଏ ଏବଂ 'ମରା' 'ମରା' ଜପ କରୁଥାଏ ।



ଦିନେ ବ୍ରହ୍ମା ଆକାଶରେ ଯାଉଥିଲେ । ସେ 'ମରା' 'ମରା' ଶୁଣି ବିସ୍ମିତ ହେଲେ । ତଳକୁ ଆସି ଶୁଣିଲେ ଯେ, ଉଇହୁଙ୍କା ମଧ୍ୟରୁ 'ରାମ' ଶବ୍ଦ ବାହାରୁଅଛି । ତହୁଁ ସେ ହୁଙ୍କା ମଧ୍ୟରୁ ମୁନିଙ୍କୁ ବାହାର କରି ନିଜ କମଣ୍ଡଳରୁ ଜଳ

ସେଚନ କଲେ । ଏଥିରେ ରତ୍ନାକର ଦିବ୍ୟ ଶରୀର ଲାଭ କରି ବ୍ରହ୍ମାଙ୍କୁ ଦର୍ଶନ କଲେ । ବ୍ରହ୍ମା ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର ନାମ ଦେଲେ 'ବାଲ୍ମୀକି' । ସଂସ୍କୃତ ଭାଷାରେ ବାଲ୍ମୀକର ଅର୍ଥ ଉଇହୁଙ୍କା ।

ରତ୍ନାକର ଆଉ ନିଷ୍ଠୁର ଓ ଅତ୍ୟାଚାରୀ ଦସ୍ୟୁ ନୁହନ୍ତି । ସେ ପରମ ସାଧୁ ଓ ପଣ୍ଡିତ । କୌଣସି ପ୍ରାଣୀର ଦୁଃଖ ଦେଖିଲେ ସେ କାନ୍ଦି ପକାଉଥିଲେ । ଥରେ ଗୋଟିଏ ବଗ ଶରବିଦ୍ଧ ହୋଇ ତଳେ ପଡ଼ିଗଲା । ଏଥିରେ ବଗୁଲୀଟି ଅତି ବିକଳ ହୋଇ କାନ୍ଦିଲା । ଏହା ଶୁଣି ବାଲ୍ମୀକିଙ୍କ ହୃଦୟ ତରଳି ଗଲା । ସେ ଏକ କ୍ଷୁଦ୍ର ଶ୍ଳୋକରେ ଶର ମାରିଥିବା ବ୍ୟାଧକୁ ଭର୍ତ୍ସନା କରିଥିଲେ । ଏହାହିଁ ଜଗତର ଆଦି କବିତା । ଏଥିଯୋଗୁଁ ବାଲ୍ମୀକିଙ୍କୁ 'ଆଦିକବି' ମଧ୍ୟ କୁହାଯାଏ ।

ବାଲ୍ମୀକି ସର୍ବ ପ୍ରଥମେ ସଂସ୍କୃତ ଭାଷାରେ ରାମାୟଣ ରଚନା କରିଥିଲେ । ଏହା ଆଜି ହିନ୍ଦୁ ଜାତିର ଏକ ଅମୂଲ୍ୟ ଧର୍ମଗ୍ରନ୍ଥ । ବର୍ତ୍ତମାନ ରାମାୟଣ ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇ ପ୍ରଶଂସିତ ହୋଇଅଛି ।



# ଶ୍ରବଣକୁମାର

ହଜାର ହଜାର ବର୍ଷ ତଳେ ଅନ୍ଧକ ନାମରେ ଜଣେ ଋଷି ଥିଲେ । ତାଙ୍କର ଏକମାତ୍ର ପୁତ୍ରର ନାମ ଶ୍ରବଣକୁମାର ।

ଶ୍ରବଣ ବେଦ, ବେଦାନ୍ତ ପୁରାଣ ଆଦି ପିତାଙ୍କଠାରୁ ଶିକ୍ଷା କରିଥିଲା । ସେ ବଡ଼ ପିତୃ ମାତୃ ଭକ୍ତ । ତାହାର ମଧୁର ବ୍ୟବହାରରେ ପିତାମାତା ମଧ୍ୟ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ । ସେମାନେ ତାକୁ ଦଣ୍ଡେ ନ ଦେଖିଲେ ଅସ୍ଥିର ହୋଇ ପଡୁଥିଲେ ।

ଶ୍ରବଣର ପିତାମାତା ଦୁହେଁ ବୃଦ୍ଧ ହୋଇ କ୍ରମେ ଦୃଷ୍ଟିଶକ୍ତି ହରାଇ ବସିଲେ । କେଉଁଆଡ଼େ ଯା ଆସ କରି ପାରିଲେ ନାହିଁ । ସେମାନଙ୍କର ପ୍ରତିପୋଷଣ ଓ ସେବା ଶୁଶ୍ରୂଷା ଆଦିର ଭାର ପୂରା ଶ୍ରବଣକୁମାର ଉପରେ ପଡ଼ିଲା ପୁତ୍ର ହେଲା ସେମାନଙ୍କର ଏକମାତ୍ର ଅବଲମ୍ବନ ।

ପ୍ରାତଃ କାଳରୁ ଉଠି ଶ୍ରବଣ ଆଶ୍ରମ ପରିଷ୍କାର କରେ, ପୂଜା, ହୋମପାଇଁ ଫୁଲ, ତୁଳସୀ ଓ କାଠ ଆଦି ସଂଗ୍ରହ କରେ, ଆଶ୍ରମ ଉଦ୍ୟାନର ଯତ୍ନ ନିଏ । ପିତାମାତାଙ୍କର ଖାଦ୍ୟ ପାନୀୟର ବ୍ୟବସ୍ଥା କରେ । ଏହିପରି କେତେ କାଳ ଗଡ଼ିଗଲା ।

ପରେ ଶ୍ରବଣର ପିତାମାତା ତୀର୍ଥଭ୍ରମଣ କରିବାକୁ ମନକଲେ ଏବଂ ପୁଅ ଆଗରେ ସେମାନଙ୍କର ଇଚ୍ଛା ପ୍ରକାଶ କଲେ ।

ଆଜିକାଲି ପରି ସେତେବେଳେ ରେଳ, ମଟର ପ୍ରଭୃତି କିଛି ନ ଥିଲା । ଲୋକେ ପାଦରେ ଯା ଆସ କରୁଥିଲେ । କେବଳ ରାଜା ମହାରାଜା ଓ ଧନୀ ବ୍ୟକ୍ତିମାନେ ସବାରୀ, ପାଲିଙ୍କି, ହାତୀ ବା ଘୋଡ଼ାରେ ଚଢ଼ି, ଦୂର ସ୍ଥାନକୁ ଯାଉଥିଲେ । ବନବାସୀ ଋଷିକୁମାର ଯାନବାହାନ ପାଇବ କେଉଁଠୁ ? ପିତାମାତାଙ୍କ ଇଚ୍ଛା ପୂରଣ କରିବାପାଇଁ ସେ ଅଧୀର ହୋଇପଡ଼ିଲା, କିନ୍ତୁ ତାକୁ ହଠାତ୍ କୌଣସି ବୁଦ୍ଧି ଦିଶିଲା ନାହିଁ । ସେ ଉପାୟ ଚିନ୍ତା କରିବାକୁ ଲାଗିଲା ।

ଶ୍ରବଣ ଦୁଇଟି ଟୋକେଇ ବେତରେ ବୁଣିଲା ଓ ଗୋଟିଏ ବାଉଁଶ ଖଣ୍ଡ କଲା । ବାଉଁଶର ଦୁଇପଟେ



ଟୋକେଇ ଦୁଇଟି ଝୁଲେଇ ଦେଇ ତହିଁରେ ପିତାମାତାଙ୍କୁ ବସାଇଲା ଏବଂ ନିଜ କାନ୍ଧରେ ଧରିଟିକୁ ବୋହି ବୋହି ବାଟ

ଗ୍ଭଲବାକୁ ଲାଗିଲା । ସାମାନ୍ୟ ବାଳକ, ଦୁଇଟି ବୟସ୍କ ବ୍ୟକ୍ତିଙ୍କୁ ବହୁଦୂର ବୋହିନେବା ତା ପକ୍ଷରେ କେତେ କଷ୍ଟକର !

ମାସ ମାସ, ବର୍ଷ ବର୍ଷ ଧରି ଶ୍ରବଣକୁମାର ବାଟ ଗ୍ଭଲଥାଏ । ଯେଉଁଠି ବିଶ୍ରାମ ଦରକାର ହୁଏ ସେଠି ବିଶ୍ରାମ କରେ । ସନ୍ଧ୍ୟା ହେବା ପୂର୍ବରୁ ନିକଟବର୍ତ୍ତୀ ଗ୍ରାମରେ ଅଶ୍ରୟ ନିଏ । ଗାଁଲୋକେ ସେମାନଙ୍କ ପାଇଁ ସବୁ ବନ୍ଦୋବସ୍ତ କରି-ଦିଅନ୍ତି ଓ ଋଷିଙ୍କଠାରୁ ଶାସ୍ତ୍ରପୁରାଣ ଶୁଣନ୍ତି ।

କୌଣସି ତୀର୍ଥରେ ପହଞ୍ଚିଲେ ସେମାନେ କିଛିଦିନ ସେଠାରେ ଅବସ୍ଥାନ କରନ୍ତି । ପିତାମାତା ତୀର୍ଥସ୍ନାନ ଦର୍ଶନ କରନ୍ତି, ତର୍ପଣ ଓ ପିତୃ ପୁରୁଷଙ୍କୁ ପିଣ୍ଡଦାନ କରନ୍ତି । ତା ପରେ ଅନ୍ୟ ତୀର୍ଥ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି ।

ଏହିପରି କେତେ ତୀର୍ଥ ବୁଲି ଶ୍ରବଣକୁମାର ଶେଷରେ ସରଯୂ ତୀରବର୍ତ୍ତୀ ଏକ ଅରଣ୍ୟରେ ପହଞ୍ଚିଲା । ସେତେ-ବେଳେ ଖରାଦିନ । ଖରାପ୍ରଚଣ୍ଡ ଖରା ସହିନପାରି ସେ ଭାରଟିକୁ ଗୋଟିଏ ଗଛ ତଳେ ଥୋଇଦେଲା । ପିତାମାତାଙ୍କୁ ତୃଷା ହେବାରୁ ଶ୍ରବଣକୁମାର କଳସୀ ନେଇ ସରଯୂ ନଦୀକୁ ଜଳପାଇଁ ଗଲା ।

ଏହି ସମୟରେ ଅଯୋଧ୍ୟାର ରାଜା ଦଶରଥ ମୃଗୟା ନିମନ୍ତେ ଅରଣ୍ୟ ମଧ୍ୟରେ ବୁଲୁଥିଲେ । ଶବ୍ଦଭେଦୀ ବାଣ ମାରିବାରେ ସେ ବଡ଼ ଧୁରନ୍ଧର । ନଦୀକୂଳର ଶବ୍ଦ ଶୁଣି ରାଜା

ମନେକଲେ, "ଗୋଟାଏ ମୃଗ ନଦୀରୁ ପାଣି ପିଉଛି । ସେଥି ହେତୁ ଏଭଳି ଶବ୍ଦ ହେଉଛି ।" ତହୁଁ ସେ ଶବ୍ଦକୁ ଲକ୍ଷ୍ୟକରି ଶର ମାରିଦେଲେ ।

ହଠାତ୍ ମନୁଷ୍ୟର କରୁଣ ଚିତ୍କାର ଭାସି ଆସିଲା । ଏଥିରେ ରାଜା ଅଚମ୍ଭିତ ହେଲେ । ତାଙ୍କର ବୁଦ୍ଧି ହଜିଗଲା । ହାତରୁ ଧନୁଶର ମଧ୍ୟ ଖସି ପଡ଼ିଲା । ନରହତ୍ୟା—ଏହି ଆଶଙ୍କାରେ ତାଙ୍କର ଆପାଦମସ୍ତକ ଥରି ଉଠିଲା ।

ଦଶରଥ ନଦୀକୂଳକୁ ଯାଇ ଦେଖିଲେ ଯେ, ତାଙ୍କର ଶର ଗୋଟିଏ ଗରୀବ ଋଷିପୁତ୍ରର ଛାତିରେ ପୂଟି ଯାଇଛି । ପିଲାଟିର ଜ୍ଞାନ ନାହିଁ । ତାହାର ପାଦ ପାଣି ଭିତରେ ଅଛି ଓ ମୁଣ୍ଡ ଭୂମି ଉପରେ ରହିଛି । ଜଳପୂର୍ଣ୍ଣ କଳସୀଟିଏ ପାଖରେ ପଡ଼ିଛି । ଏ କରୁଣ ଦୃଶ୍ୟ ଦେଖି ରାଜାଙ୍କ ଦୁଇ ଆଖିରୁ ଲୋତକ ବହିଗଲା ।

କିଛିକ୍ଷଣ ପରେ ଶ୍ରବଣର ଟିକେ ଚେତା ଆସିଲା । ସେ ଯନ୍ତ୍ରଣାରେ ଛଟପଟ ହୋଇ କହୁଥାଏ, ମରିଗଲି, ମରିଗଲି; ବାପା ମା'ଙ୍କୁ ମୋର ପାଣି ଦେବ କିଏ ? ସେମାନେ ତୃଷାରେ ନିଶ୍ଚୟ ପ୍ରାଣ ହରାଇବେ । ମୁଁ କେବେ କାହା ପ୍ରତି ହିଂସା କରିନାହିଁ, କିଏ କାହିଁକି ମୋତେ ମାରିଲା ।"

ଏସବୁ କଥା ଶୁଣି ଦଶରଥ କାଠ ପାଲଟିଗଲେ । ତାଙ୍କ ସର୍ବାଙ୍ଗରୁ ଝାଳ ବହିଗଲା । କିଏ ତାହାର ବାପା ମା', କେଉଁଠି ଅଛନ୍ତି ସେମାନେ, ଏହା ଜାଣିବାକୁ ତାଙ୍କର ଉତ୍କଣ୍ଠା

ହେଲା । ତହୁଁ ସେ ପଚାରିଲେ, "ବାଳକ ! ତୁମେ କିଏ ?" ଶ୍ରବଣକୁମାର ଉତ୍ତର ଦେଲା, "ମୁଁ ଜଣେ ଋଷିପୁତ୍ର । ଆପଣ କ'ଣ ମୋତେ ଶର ମାରିଛନ୍ତି ?"

ଦଶରଥ—ହଁ । ମୃଗଟିଏ ନଦୀରେ ଜଳପାନ କରୁଅଛି ଭାବି ଶରଟି ମାରିଥିଲି । ମୁଁ ପାପୀ, ମୋର ପ୍ରାୟଶ୍ଚିତ୍ତ ନାହିଁ ।

ଶ୍ରବଣକୁମାର—ମହାରାଜ ! ଆପଣଙ୍କର ଦୋଷ ଦେଇ କି ଲାଭ, ଯାହା ଭାଗ୍ୟରେ ଥିଲା ତାହା ଘଟିଗଲା । ଅଳ୍ପକ୍ଷଣ ପରେ ଏ ଜୀବନ ଚାଲିଯିବ । ନିକଟରେ ମୋର ଅନ୍ଧ ପିତାମାତା ଅଛନ୍ତି । ଶୋଷରେ ସେମାନଙ୍କର କଣ୍ଠ ଶୁଖି ଯାଉଥିବ, ପାଣି ଦେଇ ଶୀଘ୍ର ସେମାନଙ୍କର ଜୀବନ ରକ୍ଷା କରନ୍ତୁ ।

ଏହା କହୁଁ କହୁଁ ଶ୍ରବଣର କଣ୍ଠ ରୁଦ୍ଧ ହୋଇ ଆସିଲା, ସଙ୍ଗେ ସଙ୍ଗେ ତାହାର ପ୍ରାଣ ଛାଡ଼ିଗଲା ।

ଶ୍ରବଣ ଫେରିବାରେ ବିଳମ୍ବ ହେବାରୁ ପିତାମାତାଙ୍କର ମନ ବ୍ୟାକୁଳ ହୋଇଉଠିଲା । ଟିକେ କିଛି ଶବ୍ଦ ହେଲେ ଶ୍ରବଣ ଆସିଲା ବୋଲି ମନେକରୁଥାନ୍ତି । ଏହି ସମୟରେ ସେମାନେ ଶୁଣିବାକୁ ପାଇଲେ, 'ଜଳ ନିଅନ୍ତୁ ।' ଏ କଥା ଶୁଣିବା ମାତ୍ରେ ଅନ୍ଧକ ପଚାରିଲେ, "ବାପ ! ଏତେ ଡେରି କଲୁ କାହିଁକି ?" କିନ୍ତୁ କିଛି ଉତ୍ତର ନ ପାଇବାରୁ ତାଙ୍କର ସନ୍ଦେହ ହେଲା । ସେ ପୁଣି ଶୁଣିଲେ, 'ଜଳ ନିଅନ୍ତୁ ।'

ଅନ୍ୟ ଲୋକର କଣ୍ଠସ୍ୱର ଶୁଣି ପିତାମାତା କହି ଉଠିଲେ, "କିଏ ତୁମେ ? ଶ୍ରବଣ ଆମର କାହିଁ ? ସେ ଗଲା କୁଆଡେ ?"

ରାଜା ଅତି ବ୍ୟାକୁଳ କଣ୍ଠରେ କହିଲେ, "ମୁଁ ଅଯୋଧ୍ୟାର ହତଭାଗ୍ୟ ରାଜା ଦଶରଥ । ମୁଁ ବର୍ତ୍ତମାନ ଇକ୍ଷ୍ୱାକୁ ହତ୍ୟାକାରୀ । ଆପଣଙ୍କର ପୁତ୍ର ଶ୍ରବଣ ନଦୀରେ କଳସୀ ବୁଡ଼ାଉଥିବା ବେଳେ ଭକ୍ ଭକ୍ ଶବ୍ଦ ଶୁଣିଲି । ବନ୍ୟହସ୍ତୀ ଜଳପାନ କରୁଅଛି ମନେକରି ଶରଟିଏ ମାରିଦେଲି । ସେଥିରେ ଶ୍ରବଣର ପ୍ରାଣ ଚାଲି ଯାଇଅଛି । ମୁଁ ମହାପାପୀ ! ମୋତେ କ୍ଷମା କରନ୍ତୁ ।"

ପୁତ୍ରର ମୃତ୍ୟୁ ସମ୍ବାଦ ଶୁଣିଲାକ୍ଷଣି ପିତାମାତା ଅତି ବିକଳ ହୋଇ କାନ୍ଦିବାକୁ ଲାଗିଲେ । ସେମାନେ କହିଲେ, "ହେ ଭଗବାନ ! ଆପଣଙ୍କର କଣ ଏହି ଇଚ୍ଛା ଥିଲା । ଆମର ଅନ୍ଧର ଲଉଡ଼ି, ବୁଢ଼ାବୁଢ଼ୀର ଧନ ଓ ଜୀବନର ଆଶ୍ରୟଟିକୁ ଛଡ଼ାଇ ନେଇଗଲ ।"

ଏହାପରେ ଅନ୍ଧକ ଦଶରଥଙ୍କୁ କହିଲେ, "ହେ ରାଜନ ! ପାଖରେ ଅଭ କି ପ୍ରୟୋଜନ । ଆମ ବୁଢ଼ାବୁଢ଼ୀ ପୁତ୍ର ନିକଟକୁ ନେଇ ଯାଅନ୍ତୁ, ଏହାହିଁ ତୁମକୁ ପ୍ରାର୍ଥନା । କିନ୍ତୁ ମନେ ରଖନ୍ତୁ, ଆପଣ ଆମପରି ଦିନେ ପୁତ୍ର ବିଚ୍ଛେଦରେ ପ୍ରାଣ ହରାଇବେ ।"

ରାଜା ଦଶରଥ ଋଷି ଓ ଋଷିପତ୍ନୀଙ୍କୁ କାନ୍ଧରେ ବୋହି ନେଇଗଲେ । ଶ୍ରବଣ ଦେହରେ ହାତ ବୁଲାଇଲେ କ୍ଷଣି ଦୁଃଖରେ ସେମାନଙ୍କ ପ୍ରାଣବାୟୁ ଉଡ଼ିଗଲା ।



# ପ୍ରକୃତ ବନ୍ଧୁ

ପୂର୍ବେ ସନ୍ଦୀପନି ମୁନିଙ୍କ ଆଶ୍ରମରେ ବହୁତ ଶିଷ୍ୟ ରହି ପାଠ ପଢ଼ୁଥିଲେ । ଶ୍ରୀକୃଷ୍ଣ ଓ ବଳରାମ ମଧ୍ୟ ତାଙ୍କର ଶିଷ୍ୟ ଥିଲେ ।

ଶ୍ରୀକୃଷ୍ଣଙ୍କର ଖେଳ ସାଥୀ ଥିଲେ ଜଣେ ଦରିଦ୍ର ବ୍ରାହ୍ମଣ ପିଲା । ତାଙ୍କର ନାମ ସୁଦାମା । ଶ୍ରୀକୃଷ୍ଣ ଓ ସୁଦାମା ସର୍ବଦା ଏକତ୍ର ଖାଉଥିଲେ, ଖେଳୁଥିଲେ, ବୁଲୁଥିଲେ ଓ ପାଠ ପଢ଼ୁଥିଲେ । ଏଭଳି ଭାବେ ଅତି ସୁଖରେ ପାଠପଢ଼ା ଶେଷ କରି ନିଜ ନିଜ ଘରକୁ ଫେରିଗଲେ ।

ସୁଦାମାଙ୍କର ଖଣ୍ଡିଏ କୁଡ଼ିଆ ବ୍ୟତୀତ ଆଉ କିଛି ନ ଥିଲା । ସେ ପ୍ରତିଦିନ ଭିକ ମାଗି ଯାହା ଆଣନ୍ତି ତହିଁରେ ସେ ଓ ତାଙ୍କର ସ୍ତ୍ରୀ ସୁମତୀ କେଣସି ଚଳନ୍ତି । ଦୁଇ ଜଣଙ୍କ ମଧ୍ୟରେ ଖୁବ୍ ସ୍ନେହ ମମତା ଥାଏ । ଦୁଃଖ ବା ଅଭାବ ପଡ଼ିଲେ ସେମାନେ କେବେ ହେଲେମାତ୍ର ବିଚଳିତ ହେଉ ନ ଥିଲେ ।

ଥରେ କେତେ ଦିନ ଲାଗି ବହୁତ ବର୍ଷା ହେଲା । ସୁଦାମା କେଉଁଆଡ଼େ ଭିକ ମାଗି ଯାଇ ପାରିଲେ ନାହିଁ । ଘରେ ଚାଉଳ ବି ନ ଥାଏ । ସେମାନେ କେତେ ଦିନ ଭୋକ ଉପାସରେ କଟାଇଲେ । ଦିନେ ସୁମତୀ ସ୍ୱାମୀଙ୍କୁ କହିଲେ, "କଣ ଖାଇବା ଟିକିଏ ଚିନ୍ତା କର । ସବୁବେଳେ ଖାଲି 'କୃଷ୍ଣ', 'କୃଷ୍ଣ' ହେଉଛ । ସେଥିରେ କ'ଣ ଭୋକ ଶୋଷ ମେଣ୍ଟିବ ।"

ସୁଦାମା—ସୁମତୀ ! ତୁ ଆଉ ଏପରି କହନା । ଶ୍ରୀକୃଷ୍ଣଙ୍କର ନାମ କେତେ ମଧୁର । ସେ ନାମର ମାହାତ୍ମ୍ୟ କେତେ ଅଦ୍ଭୁତ ! ତୁ ତାହା କାହୁଁ ଜାଣିବୁ ? ସେ ଦରିଦ୍ରର ବନ୍ଧୁ । ତାଙ୍କୁ ଦୃଢ଼ ଭକ୍ତିରେ ଡାକେ ଯେ ତାର ସମସ୍ତ ମନସ୍କାମନା ପୂରଣ କରନ୍ତି ।

ସୁମତୀ—ସ୍ୱାମୀ ! ଭଲ କଥା କହୁଅଛ । ଆମେ ତ ନିତି ଦୁଇବେଳା ମୁଠିଏ ଖାଇବାକୁ ପାଉନାହୁଁ । ଶ୍ରୀକୃଷ୍ଣ ବର୍ତ୍ତମାନ ଦ୍ୱାରକାର ରାଜା । ସେ ପିଲାଦିନେ ତ ତୁମ୍ଭର ସହପାଠୀ ଥିଲେ । ତୁମ୍ଭେ ଦ୍ୱାରକାକୁ ଯାଇ ଆମ୍ଭର ଦୁଃଖ ଜଣାଅ । ସେ ଦୟାକଲେ ଆମର ସବୁ ଅଭାବ କ୍ଷଣକେ ଉଡିଯିବ । ତୁମ୍ଭଙ୍କୁ ଆଉ ଦ୍ୱାର ଦ୍ୱାର ବୁଲିବାକୁ ପଡ଼ିବ ନାହିଁ ।

ସୁଦାମା—ସେ ତ ବର୍ତ୍ତମାନ ଆଉ ପିଲାଦିନର ସାଙ୍ଗ ଛୋଟ ଗୋରୁଜଗା ପିଲା ନୁହନ୍ତି, ସେ ବର୍ତ୍ତମାନ ଦ୍ୱାରକାର ରାଜା । ମୋ ଭଳି ଦରିଦ୍ର ଲୋକ ଗଲେ ସେ କ'ଣ ଆଉ ମୋତେ ଚିହ୍ନି ପାରିବେ ?

ସୁମତୀ— ସେ କେବେହେଁ ତୁମ୍ଭଙ୍କୁ ପାଶୋରି ନ ଥିବେ । ନିଶ୍ଚୟ ଚିହ୍ନି ପାରିବେ । ନ ହେଲେ ଆମେ ତ ଭିଖାରୀ, ଆମର ଗୋଟାଏ ମାନ ଅପମାନ କ'ଣ । ତୁମ୍ଭେ ଚୁପ୍ ହୋଇ ଘରେ ବସିଲେ କ'ଣ ହେବ ? ମୋ ଯାଚ କଥା ମାନି ତୁମ୍ଭେ ଦ୍ୱାରକା ଯାଅ, ଆଉ ଅମଙ୍ଗ ହୁଅ ନାହିଁ ।

ସୁଦାମା—ହଉ, ତେବେ ଖାଲି ହାତରେ କପରି ଯିବ ?

ସୁଶୀଳା—ତୁମ୍ଭେ କିଛି ଚିନ୍ତା କରନାହିଁ । ଘରେ ମୁଠାଏ ଖୁଦ ଅଛି, ମୁଁ ଭାଜି ଦେଉଛି । ତୁମ୍ଭେ ଏ ଭଜାଚଉଳ ତାଙ୍କରେ ବାନ୍ଧି ନିଅ । ଶ୍ରୀକୃଷ୍ଣ କିଛି ମାଗିଲେ ଏହା ତାଙ୍କୁ ଦେବ । ସେ କୃଷ୍ଣ ଏପରି ଆନନ୍ଦରେ ଖାଇବେ ।

ସେତେବେଳେ ରାଜସଭା ଲାଗିଛି । ଶ୍ରୀକୃଷ୍ଣ ସିଂହାସନରେ ବସିଛନ୍ତି । ପାଖରେ ପାଣ୍ଡବମାନେ ଅଛନ୍ତି । ଠିକ୍ ଏହି ସମୟରେ ସୁଦାମା ଦ୍ୱାରକାରେ ପହଞ୍ଚି ଶ୍ରୀକୃଷ୍ଣଙ୍କ ରାଜପ୍ରାସାଦର ସିଂହଦ୍ୱାର ନିକଟରେ ଠିଆ ହେଲେ । ଭିତରକୁ ଯିବାକୁ ତାଙ୍କର ସାହାସ ହେଲା ନାହିଁ ।

ଅନ୍ତର୍ଯ୍ୟାମୀ ଶ୍ରୀକୃଷ୍ଣ ସମସ୍ତଙ୍କ ମନକଥା ଜାଣିପାରନ୍ତି । ସୁଦାମା ସିଂହଦ୍ୱାରରେ ଠିଆହୋଇଥିବା କଥା ତାଙ୍କୁ ଆଉ ଅଜଣା ରହିଲା ନାହିଁ । ସେ ଦୌଡ଼ି ଆସି 'ସଖା', 'ସଖା' କହି ସୁଦାମାଙ୍କୁ କୁଣ୍ଢାଇ ପକାଇଲେ ଏବଂ ତାଙ୍କୁ ନିଜ ନଅର ଭିତରକୁ ନେଇଗଲେ । ତାଙ୍କ ସ୍ତ୍ରୀ ରୁକ୍ମିଣୀ ସୁଦାମାଙ୍କ ପାଦ ଧୋଇଦେଇ ନିଜ ପଣତରେ ପୋଛି ଦେଲେ ଏବଂ ସୁବାସିତ ଚନ୍ଦନ ତାଙ୍କ ଦେହରେ ବୋଳିଦେଲେ । ଏହା ଦେଖି ସୁଦାମା ଅବାକ୍ ।

ଶ୍ରୀକୃଷ୍ଣ ବହୁ ଆଦରରେ ସୁଦାମାଙ୍କ ସହିତ ମଧୁର ଆଳାପ କଲେ । ପିଲାଦିନର କେତେ କଥା ମନେପକାଇ



ଉଭୟେ କେତେ ଖୁସି ହେଉଥିଲେ । ଏହି ସମୟରେ ଶ୍ରୀକୃଷ୍ଣ ପଚାରିଲେ, "ସଖା ! ସୁମତୀ ମୋ ପାଇଁ କ'ଣ କିଛି ଦେଇ ନାହାନ୍ତି ?" ଏତେ ବଡ଼ ରାଜ ପ୍ରାସାଦରେ ସୁଦାମା ଖୁଦ ପୁଡ଼ାଟି କିପରି ପଠାଇବେ ? ଶ୍ରୀକୃଷ୍ଣଙ୍କୁ ତାହା ବା କିପରି ଦେବେ ? ସେ ଏଭଳି ଭାବୁଥାନ୍ତି ଠିକ୍ ଏହି ସମୟରେ ଶ୍ରୀକୃଷ୍ଣଙ୍କର ଆଖି ଖୁଦ ପୁଡ଼ାଟି ଉପରେ ପଡ଼ିଗଲା । ସେ ହସି ହସି ତାହା ଫିଟାଇଲେ ଓ ଖୁଦ ଭଜାତକ ଖାଇବାକୁ ଲାଗିଲେ । ସେତେବେଳେ ଶ୍ରୀକୃଷ୍ଣଙ୍କର ଆନନ୍ଦ କହିଲେ ନ ସରେ ।

ଶ୍ରୀକୃଷ୍ଣ ଓ ରୁକ୍ମଣୀଙ୍କର ଆଦର ଅଭ୍ୟର୍ଥନା ପାଇ ସୁଦାମା ଅତି ସୁଖରେ କେତେଦିନ ଦ୍ୱାରକାରେ ରହିଲେ । ପ୍ରତିଦିନ ତାଙ୍କ ପାଇଁ ବିବିଧ ମିଷ୍ଟାନ୍ନ ଓ ବ୍ୟଞ୍ଜନ ତିଆରି ହେଉଥାଏ । ତାହା ସବୁ ପୁଣି ସୁବର୍ଣ୍ଣ ପାତ୍ରରେ ପରିବେଷଣ କରାଯାଉଥାଏ । ଶ୍ରୀକୃଷ୍ଣ ଓ ସୁଦାମା ସର୍ବଦା ଏକତ୍ର ଭୋଜନ କରନ୍ତି । ଏଭଳି ସ୍ନେହ ଓ ସମ୍ମାନ ପାଇ ସୁଦାମା ନିଜକୁ ପରମ ଭାଗ୍ୟବାନ ବୋଲି ମନେକଲେ ।

ସୁଦାମା ସମ୍ପତ୍ତୀକୁ ଭୁଲି ପାରି ନ ଥିଲେ । ସେ କ'ଣ ଖାଉଥିବେ, ଏକଥା ସେ ବାରମ୍ବାର ଚିନ୍ତା କରୁଥିଲେ । ଯେବେ ସେ ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କଠାରୁ ବିଦାୟ ନେଇ ନିଜ ଗ୍ରାମକୁ ବାହାରିଲେ । କିନ୍ତୁ ସେମାନଙ୍କୁ କିଛି ମାଗି ପାରିଲେ ନାହିଁ । ସେ ଭାବିଲେ, ଶ୍ରୀକୃଷ୍ଣ ମୋତେ ନେଇ ଯେଉଁ ଭଳି ଆଦରକୁ ଏତେ ଅଭ୍ୟର୍ଥନା କଲେ, ପୁଣି ତାଙ୍କୁ ଧନ ମାଗିବି କିପରି ? ସୁମତୀ ଯାହା କହିବ କହୁ, ସବୁ ମୁଣ୍ଡ ପାତି ସହିଯିବି ।"

ସୁଦାମା ନିଜ ଗ୍ରାମରେ ପହଞ୍ଚି ଦେଖିଲେ ଯେ ତାଙ୍କ ଭଙ୍ଗା କୁଡ଼ିଆଟି ନାହିଁ । ସେଠି ଗୋଟିଏ ପ୍ରକାଣ୍ଡ କୋଠା ଠିଆ ହୋଇଛି । ଦାସ ଦାସୀ ଯାନ ବାହନ କେତେ କ'ଣ ଦେଖାଯାଉଛି । ଏସବୁ ଦେଖି ସୁଦାମା ଅତି ବିସ୍ମିତ ହେଲେ ।

ଏହି ସମୟରେ ସୁମତୀ କୋଠାରୁ ବାହାରି ପଡ଼ିଲେ । ସୁଦାମାଙ୍କୁ ଦେଖି କହିଲେ, 'ଭୁଲିଗଲ ଏଠି ଏସବୁ କ'ଣ ଠିଆ ହୋଇଛି ? ସଖା ଶ୍ରୀକୃଷ୍ଣଙ୍କର ଅନୁଗ୍ରହରୁ ଆମର ଆଜି

କୌଣସି ବିଷୟରେ ଅଭାବ ନାହିଁ । ଏ କୋଠା, ଏ ଧନ ସମ୍ପତ୍ତି, ଏ ଦାସ ଦାସୀ ଯାହା ସବୁ ଦେଖୁଛ ତାହା ଦୟାମୟ ଶ୍ରୀକୃଷ୍ଣଙ୍କର ଦାନ । ଧନ୍ୟ ଶ୍ରୀକୃଷ୍ଣ !"



## କ୍ରୋଧର ପରିଣାମ

ସୂର୍ଯ୍ୟ ବଂଶରେ ନାଭାଗ ବୋଲି ଏକ ରାଜା ଥିଲେ । ତାଙ୍କର ପୁତ୍ରଙ୍କର ନାମ ଅମ୍ବରୀଷ । ନାଭାଗଙ୍କ ପରେ ଅମ୍ବରୀଷ ରାଜ ସିଂହାସନରେ ବସିଲେ । ସେ ବିଷ୍ଣୁ ଭକ୍ତ ଥିଲେ । ଥରେ ସେ ଅଶ୍ୱମେଧ ଯଜ୍ଞ କରିବାରୁ ବିଷ୍ଣୁ ତାଙ୍କ ପ୍ରତି ସନ୍ତୁଷ୍ଟ ହୋଇ କହିଲେ 'ରାଜନ୍ ! ମୁଁ ତୁମ ଭକ୍ତି ଓ ନିଷ୍ଠାରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ତେଣୁ ତୁମ ଦେହରକ୍ଷୀ ହିସାବରେ ମୁଁ ମୋର ସୁଦର୍ଶନ ଚକ୍ରକୁ ନିଯୁକ୍ତ କରୁଛି । ଯେ କୌଣସି ବିପଦ ପଡ଼ିଲେ ସେ ତୁମକୁ ରକ୍ଷା କରିବ ।"

ଦିନକର କଥା । ରାଜା ଏକାଦଶୀ ବ୍ରତ କରି ବହୁ ଅତିଥି ଓ ଅଭ୍ୟାଗତଙ୍କୁ ଭୂରି ଭୋଜନ ସହିତ ପ୍ରଚୁର ଧନ ଦାନ କଲେ । ବ୍ରତ ପରଦିନ ପାରଣା କରିବାକୁ ଯିବା ସମୟରେ ହଠାତ୍ ଦୁର୍ବାସା ମୁନି ତାଙ୍କ ପ୍ରାସାଦଦ୍ୱାରରେ ଉପସ୍ଥିତ ହେଲେ । ତାଙ୍କୁ ଯଥାବିଧି ସମ୍ମାନ ଦେଖାଇ ରାଜା କହିଲେ, "ମହର୍ଷେ ! ବର୍ତ୍ତମାନ ମୋର ଏକାଦଶୀ ବ୍ରତର ପାରଣା

ହେଲ । ଆପଣ ମୋ ଗୃହରେ ଭୋଜନ କରିବେ ।'' ଦୁର୍ବାସା ଏଥିରେ ସମ୍ମତ ହୋଇ ସ୍ନାନ କରିବାକୁ ବାହାରିଲେ । ରାଜା ତାଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲେ ।

ଗଡ଼ି ଗଡ଼ି ବେଳ ଗଡ଼ିଗଲା; ଦୁର୍ବାସା ଫେରିଲେ ନାହିଁ । ଏଣେ ଅମ୍ବରୀଷ ତାଙ୍କୁ ଚାହିଁ ବସିଥାନ୍ତି । ପାରଣା ବେଳ ଗଡ଼ିଗଲେ ବ୍ରତ ନିଷ୍ଫଳ ହେବ ଭାବି ଅମ୍ବରୀଷ ଗଣ୍ଡୂଷେ ମାତ୍ର ଜଳପାନ କରି ପାରଣା କଲେ । ଏହାପରେ ଦୁର୍ବାସା ଆସି ପହଞ୍ଚିଲେ । ଅମ୍ବରୀଷ ନିଜେ ପାରଣା କରିଥିବା କଥା କହି ତାଙ୍କ ଭୋଜନପାଇଁ ସମସ୍ତ ସାମଗ୍ରୀ ଯୋଗାଇ ଦେଲେ । କିନ୍ତୁ, ଦୁର୍ବାସାଙ୍କ ମନ କି ବୁଝେ ! ସେ କ୍ରୋଧରେ ଅଗ୍ନିଶର୍ମା ହୋଇ ଉଠିଲେ ଏବଂ କହିଲେ, "ଦେଖ ଅମ୍ବରୀଷ ! ତୁ ଅତିଥିଙ୍କ ପୂଜାରେ ବ୍ୟତିକ୍ରମ କରିଛୁ । ତୋତେ ତାହାର ପ୍ରତିଫଳ ଭୋଗ କରିବାକୁ ହେବ ।''

ଅମ୍ବରୀଷ ତହୁଁ କାକୁତିମିନତି କରି ଋଷିଙ୍କୁ ସବୁକଥା ଜଣାଇଲେ, କିନ୍ତୁ ଦୁର୍ବାସା କିଛି ନ ଶୁଣି ନିଜ ଜଟାରୁ ଅଗ୍ନି ବାହାର କରି ଅମ୍ବରୀଷଙ୍କୁ ଜାଳି ଦେବାକୁ ବସିଲେ । ବିଷ୍ଣୁଙ୍କର ସୁଦର୍ଶନ ଚକ୍ର ତତ୍‌କ୍ଷଣାତ୍ ଦୁର୍ବାସାଙ୍କ ମସ୍ତକ ଛେଦନ କରିବାକୁ ଧାଇଁଲା । ଦୁର୍ବାସା ପ୍ରାଣ ବିକଳରେ ଦୌଡ଼ୁଥାନ୍ତି; ଚକ୍ର ତାଙ୍କ ପଛେ ପଛେ ଗୋଡ଼ାଉଥାଏ । କିଛି ଉପାୟ ନ ଦେଖି ଦୁର୍ବାସା ବ୍ରହ୍ମା, ଶିବ ପ୍ରଭୃତି ଦେବଗଣଙ୍କ ଶରଣାପନ୍ନ ହେଲେ । ସୁଦର୍ଶନ ଚକ୍ର କବଳରୁ ତାଙ୍କୁ କିଏ ରକ୍ଷା କରିପାରିବ ? ବ୍ରହ୍ମାଙ୍କ ଉପଦେଶ ଅନୁସାରେ

ଦୁର୍ବାସା ବିଷ୍ଣୁଙ୍କ ନିକଟକୁ ଯାଇ ନିଜର ଦୁର୍ଦ୍ଦଶା ଜଣାଇଲେ ।



ବିଷ୍ଣୁ କହିଲେ, "ଏ ଘଟଣାରେ ମୋର ଆଉ କିଛି ଅନୁତ୍ର ନାହିଁ । ମୁଁ ତ ସୁଦର୍ଶନ ଚକ୍ରକୁ ମୋର ଭକ୍ତ ଅମ୍ବରୀଷର ଦେହରକ୍ଷୀ ରୂପେ ନିଯୁକ୍ତ କରିସାରିଛି । ତେଣୁ କେବଳ ଅମ୍ବରୀଷ ହିଁ ଚକ୍ରକୁ ଫେରାଇ ଦେଇପାରେ । ତୁମ୍ଭେ ବର୍ତ୍ତମାନ ତାଙ୍କ ନିକଟକୁ ଯାଅ । ସେ ନିଶ୍ଚୟ ତୁମକୁ କ୍ଷମା ଦେବେ ।"

ଦୁର୍ବାସା ଆଉ କରିବେ କଣ ? ଶେଷରେ ସେ ଅମ୍ବରୀଷଙ୍କ ନିକଟରେ ନିଜର କ୍ରୋଧ ପାଇଁ ଦୋଷ ସ୍ୱୀକାର କଲେ । ଅମ୍ବରୀଷଙ୍କ ଆଜ୍ଞାରେ ସୁଦର୍ଶନ ଚକ୍ର ଫେରିଗଲା । ରାଜା ଅମ୍ବରୀଷ ଦୁର୍ବାସାଙ୍କର ଯଥାବିଧି ସତ୍କାର କଲେ ।